ଦେଉଳ ହିଂଡିରେ

# କାବେର ସ୍ୱପ୍ନ

ଶ୍ରୀ ବାଞ୍ଛାନିଧି ଦାସ

ମୂଲ୍ୟ ଦଶ ପଇସା ମାତ୍ର

# ପ୍ରୀତି-ଉପହାର

ଗୁଣି-ଗୁଣାଗ୍ରାହୀ ବାଣୀ-ରମା-ଉମା-
ଯୋଗ୍ୟ-ସାଧକ
ଶ୍ରୀ କଲ୍ୟାଣଚନ୍ଦ୍ର ଦେବ-
କର-କମଳେଷୁ

ନିସର୍ଗ ନନ୍ଦନ   ଅପ୍ସମଲ୍ଲ ଖଣ୍ଡ-
ମଣ୍ଡନ ପ୍ରେମିକ-ହୃଦ
ପଣ୍ଡିତ୍ୟେ ଦେଲ   ନନ୍ଦନ ଶୃଙ୍ଗତ
ବନ୍ଦ.ଦ-ଭଞ୍ଜନ ଅଙ୍ଗ
ଲାଗିଥିଲ ଦୂରେ   ଗୁଣୀ, ଗୁଣାଗ୍ରାହୀ
ଆଜି ତବ ଦରଶନେ
ବାଣୀ-ରମା-ଉମା   ଅରଚନା ତବ
ଦେଖିଲ ଏକ ଆସନେ
ଯୋଗ୍ୟ ଉପହାର   କି ଦେବି ହେ ବୀର
ଧନେ ଯେଣୁ ନିଃସ୍ୱ କବି
ଘେନ ମୋର ସଦ୍ୟ ରଚିତ 'ଦେଉଳ
ତଟେ କବି-ସ୍ୱପ୍ନ' ଛବି ।

ଅଠମଲ୍ଲିକ
ଜନ୍ମାଷ୍ଟମୀ ୧୯।୮।୪୭

ଭବଦୀୟ
ଗୁଣମୁଗ୍ଧ
ରାଧାନାଥ

ଦେଉଳଝରରେ —

# କବିର ସ୍ୱପ୍ନ

ଛନ୍ଦିଳ ଚଞ୍ଚଳ          ମଞ୍ଜୁଳ ଝରଣୀ
ଅଷ୍ଟମଲ୍ଲ ରଙ୍ଗ ଭୂମି
ଦ୍ୱାରପାଳ ଯାର          ନୀଳ ଶୈଳମାଳ
ସୁନୀଳ ଅମ୍ବର ଚୁମ୍ବୀ ।

କାନନ-କନ୍ଦର          ମୁଖରିତ କରି
ଝରଣି-କିଙ୍କିଣୀ ବାଜେ
ଛନ୍ଦେ ଛନ୍ଦେ ତାର          ପ୍ରକୃତି-ନର୍ତ୍ତକୀ
ନୃତ୍ୟ ନବ ଛନ୍ଦ ସାଜେ

ଜନ ମନୋରମ          ‘ବୋଲବା ମାତୃଙ୍କ
ଅକିଞ୍ଚନ ବେଶ ଭୂଷା
ନନ୍ଦନ ସୁଷମା          ତୃପ୍ତି ନ ମେଣ୍ଟାଏ
ମଝଛେ ବଳାନ୍ତ ଅଶା ।

ପଞ୍ଚଧାର ଗିରେ          ଜଳଦ ବିମାନେ
ସୁରବାଳା-କୁଳ ବସି
ନୟନର ତୃଷା          ଶମନ୍ତ ମାତ୍ରିକ
ଦର୍ଶନେ ହୋଇ ଲାଳସୀ

ହିନ୍ଦ-ମାହେଶ୍ୱର          କେଳି କୁଞ୍ଜବନ
ପ୍ରଖ୍ୟାତ ‘ଦେଉଳ ଝର’
ପଞ୍ଚଧାର ଭେଦି          କଲ କଲ ସ୍ୱନେ
ଝରଇ ନିସର୍ଗ ଝର ।

ନିଥ କୁଟୁବକ          ଶାଳ ଷୀର କୋଳ
ପାଦପ-ବଲ୍ଲରୀ ପୁଞ୍ଜ
ନିସର୍ଗ-ବନ୍ଧନେ          ଟେଡ଼ ଛନ୍ଦ ପଞ୍ଚ
ହର ଉମା କେଳି କୁଞ୍ଜ

'ତପ୍ତ' 'ଅଗ୍ନି' କୁଣ୍ଡ          ଝରେ ଅହରହ
ଉଷ୍ଣ-ତପ୍ତ ଜଳ ଧାର
ରକ୍ତ-କୁଣ୍ଡ ଝରେ          ଝର ଝର ସଦା
ନୀର ଲୋହିତ ଆକାର

ତହିଁ ମୁଁ ଭାରତୀ          ପଦ୍ମର ମଞ୍ଜୀର
ଲଳିତ ରାଗିଣୀ ଶୁଣି
ଧାଇଁଲି ଆବେଗେ          'ଭାରତୀ ପଦ୍ମର
ବନ୍ଦନ' ମାନସେ ଗୁଣି ।

କଳପନା-ସିଦ୍ଧ          ସିଦ୍ଧେଶ୍ୱରଙ୍କର
ମନ୍ଦିର ପ୍ରାଙ୍ଗଣେ ଧ୍ୟାନେ
ହର ପଦ ପୂଜି          ଲକ୍ଷ୍ୟ ଲଗାଇଲି
ଭାରତୀ ଗାୟତ୍ରୀ ଗାନେ ।

ଏକ ଠାବେ ତପ୍ତ          ପୁଣି ସୁଶୀତଳ
ନିର୍ଝର ଝରଇ ଯେଣୁ
ମାନସେ ମୋହର          ଦ୍ୱନ୍ଦ୍ୱ ଉପୁଜିଲା
ଲକ୍ଷ୍ୟ ଲଗାଇଲି ତେଣୁ ।

ପଞ୍ଚଧାର ଶିରୁ          ସହସା ଆସିଲା
ବିଜୁଳି ଝଲକ ରେଖା
'କାହିଁ ଅଛୁ କେଉଁଣେ'          ସମ୍ଭାଳିବା ଦୂର
କାହିଁ ମୋ ଲାଗଲା ଦେଖା

କଳ୍ପନା-ନୟନେ ଦେଖିଲ-ପୁଷ୍ପକ
ବିମାନ ସ୍ୱରଗୁଁ ଖସେ
ଚାପଲା-ଖଚିତ ଚୂଡ଼ାପଟେ ତାର
ଜଳଦ-କେତନ ବସେ

ପଞ୍ଚଧାର ଶିରେ ଥମିଲା ସ୍ୟନ୍ଦନ
ଶ୍ୱେତ ବଳାବଳୀ ଆସି
ମାଳ ମାଳ ହୋଇ ନଭେ ଶୈଳ-ମୁଖେ
ରଚିଲେ ତୋରଣ ଲଗି ।

ଶାରଦ-ସୁନ୍ଦରୀ ଚନ୍ଦ୍ରୋତ୍ଫୁଲା ଖର
ଅର୍ଘ୍ୟ ବାରି ଶଙ୍ଖେ ଭରି
ଶାରଦୀପ୍ସା ଫୁଲ୍ଲ କୁଆ କନ୍ଥରେ
ପୂଜାଡାଲି ହାତେ ଧରି

ଶାରଦ-ସବୁଜ କେଦାର ଲହରେ
ସମୀର ଚାଲେ ଚମର
କୃଷକ-ଗାନରେ ଟିଟ୍ଟିଭି ସ୍ୱନ ଭରି
ଗାଉଁଲ ଜୟ-ମନ୍ତ୍ର ।

ଉତୁରିଲେ ଦେବୀ ରମଣୀ ସ୍ୟନ୍ଦନୁ
ଏକ ଅଙ୍ଗ-ଶ୍ୱେତ ବାସେ
ଶ୍ୱେତ ଶତଦଳ ଦକ୍ଷ କର ମଣ୍ଡେ
ରଜତ ଜୋଛନା ହାସ୍ୟେ

ବାମ କରେ ବୀଣା ମର୍ଣ୍ଡିତ, ଅପରେକ
ଅଙ୍ଗେ ସୁରଙ୍ଗ ଦୁକୂଳ
ବାମ କରେ ଧାନ୍ୟ ଶିଂସା ଗୁଚ୍ଛ ଦକ୍ଷେ
ରଙ୍ଗ କମଳ-ମୁକୁଳ

ପଞ୍ଚଧାରେ ଦେବୀ    ଚରଣ ଥାପନ୍ତେ
ଶାରଦ-ସୁନ୍ଦରୀ ଅଟି
ଅର୍ଘ୍ୟ, ପୂଜା ଫୁଲେ    ପୂଜି ଦେବୀ ଦେବା
ଗାଇଲି ବନ୍ଦନା ଧ୍ୱନି ।

'ଧନ୍ୟ ହେଲି ମୁହିଁ    ରଙ୍ଗଭୂମେ ମୋର
ଅଭିନୟ ବାଳେ ଅଛି
ସପତ୍ନୀ ଦେବୀ    ଅଛିନ୍ତି ମୋପ୍ରତେ
ଯୁଗଳ ମିତଣୀ ସାଜି ।

ସ୍ୱାଗତ ଭାରତୀ    ସ୍ୱାଗତ କମଳା
ବରେଣ୍ୟର ବନ୍ଧୁମତୀ
ଚାହାନ୍ତି ସେ ସ୍ଥାନ    ଯହିଁ ବିହରନ୍ତି
ସିଦ୍ଧେଶ୍ୱର ଉମାପତି ।

ଧୀରେ ଧୀରେ ପଦ    ସଞ୍ଚଳନେ ଦେବୀ
ମିଳିଲେ 'ଦେଉଳ ଦ୍ୱାର'
ଶୁଭ୍ର ଶୁଭ୍ର ଶ୍ୱେତ    କମଳ ବାହିନୀ
ନୟନ୍ତୁ ଛୁଟିଲା ଧାର ।
ଦେବୀ-ନେତ୍ର ନୀର    ଝରନ୍ତେ 'ଭାରତୀ'
ଝର ବେଦଗୁଣି ବେଗେ
ଝର୍ଝର ଅକୁଳ    ଭଗିନୀ ଚୋଳାଘ
ବାନ୍ଧିନ୍ତ ପ୍ରାଣ ଆବେଗେ ।

ଝର୍ଝରି ବଧିର    ଜଳଦ-ଅସ୍ତ୍ରୀ
ଭାରତୀ ଦୁଃଖେ ବ୍ୟାକୁଳେ
ପନ୍ତ୍ର ଅନୁରାଗେ    ରହିଲେ ବନ୍ଦନେ
ବାକଳି ଛିନ୍ନ ଅଞ୍ଚଳେ ।

ହୃଦି ଗୁମ୍ଫେ ଉଠିଲା        ଉଗ୍ର ଅଗ୍ନି ଜ୍ୱାଳା,
ଘନ ଘନ ବାଷ୍ପମାଳ
ଭାବୋଦ୍ଧୂଳା ଊର୍ମି        ସ୍ରୋତ ଧାଇଁ ଦେଲା
ଦ୍ୱିଗୁଣ ବେଗେ ଉଚ୍ଛଳ

ସିଦ୍ଧେଶ୍ୱର ଯୋଗୀ-        ସମ ଅଟଳମନା
ଦେଖି ଭାରତୀର ଦୁଃଖେ
ଚିନ୍ତାପୁତ୍ତଳିକା        ପଦ୍ମାସ୍ୟ କମଳ
ଉଭା ଛଳ ଛଳ ମୁଖେ

କ୍ଷଣକାଳପରେ        ତପସ୍ୱୀ ବାଲ୍ମୀକି
କ୍ରୋଧ କଲେ ସମ୍ବରଣ
ସଧୀରେ କମଳା        ଭାଷିଲେ, "ମିତଣି,
କହ ଗୋ ବ୍ୟଥା-କାରଣ ।"

ଧୀରେ ଅଶ୍ରୁ ପୋଛି        ଉତ୍ତରିଲେ ବାଣୀ
"ଶୁଣ ଗୋ ମିତଣୀ ରମା,
ମନେ ପଡ଼ିଗଲା        ଏ ଦେଉଳ ଝରେ
ସେ ସତୀ କ୍ଷମା ଉତ୍ତମା

ଅହୋ କି କଷଣ        ନ ଦେଖିଲି ଏଥ
ବାଲ୍ମୀକି ତପୋବନେ
ବନବାସୀ ହୋଇ        ଜନକ ନନ୍ଦିନୀ
କାନ୍ଦନ୍ତେ ନିର୍ବାସନେ

ବୋଲୁଥାନ୍ତି ରାମ        କରୁଣା ସାଗର
ଆହା କି ନକଲେ ସହ,
ବନେ ନିର୍ବାସିଲେ        ଅନ୍ତ ଦ୍ରଷ୍ଟା ନାହିଁ
ରାଜସିଂହାସନେ ରହି

ବନ ପକ୍ଷୀ କୁଳ         ହରିଣ ହରିଣୀ
କାନନ କରଭ ଦଳ
ପଶୁ ପକ୍ଷୀ ହୋଇ         ରହିଲେ ନୀରବ
ନେତ୍ରୁଁ ଝରୁଥିଲା ଜଳ

ସେ କରୁଣ ବାଣୀ         କହିବାକୁ ମୋର
କଣ୍ଠ ହୋଇ ଆସେ ରୁଦ୍ଧ
ନାହିଁ ମୋ ଶକତି         କହିଲେ ଭାରତୀ
ନୟନ ହୋଇଲା ମୁଦ ।

ମୁକ୍ତା ଥୋପା ସମ         ଝର ଝର ଅଶ୍ରୁ
ଝରନ୍ତି ନୟନୁ ଝରେ
ଅଶ୍ରୁ ଧାର ପୋଛି         ଉଦାସ ନୟନେ
କମଳା ଚାହିଁଲେ କାତରେ

ବିଷାଦ ମଳିନ         ବାଣୀ ମୁଖ ଦେଖି
ନ ପୁଚ୍ଛିଲେ ଆଉ ରମା
କ୍ଷଣକାଳ ପରେ         ଭାଷିଲେ ଭାରତୀ
ଅସୀମ କଳା ଉପମା

"ଜାଣିଛତ ରମା         ସେ ସୀତା କାହାଣୀ
କି ବର୍ଣ୍ଣିବି ତବ ଆଗେ
ମନେ ପଡ଼େ ଯେବେ         ଦୁଃଖିନୀ କାହାଣୀ
ମରମେ କଣ୍ଟାଘା ଲାଗେ

ଜାଣତ ବାଲ୍ମୀକି         ଶୁଣି ସେ କ୍ରନ୍ଦନ
ହୃଦ ବିଦାରକ ନାଦ
କଣ୍ଠ ତାନୁ ଜାଣି         ଧ୍ୟାନରେ ମହର୍ଷି
ଲୁଟିଲେ ସର୍ବ ସମ୍ବାଦ

ପ୍ରବୋଧନ ବାକ୍ୟେ     ସଙ୍ଗେ ଘେନି ସଖୀ
ଫେରିଲେ ସ୍ୱତପୋବନେ
ଏହି ସେହି ତପୀ-     ଆଶ୍ରମ ଦର୍ଶନେ
ସେ କଥା ପଡ଼ଇ ମନେ

ସଖୀ ବ୍ୟଥା ଘେନି     ତମସା ପୁଳିନେ
ଗୁରୁଙ୍କର ହେଲା ଯେଣୁ
ଦେବ-ମନୋହର     ଏ ଭୂମେ ତପସ୍ୱୀ
ଆଶ୍ରମ ରଚିଲେ ତେଣୁ

ଭୁଣ୍ଡ ନ ଲେଉଟେ     କହିବାକୁ ସହି
ମନ ବଳେ ବାର ବାର
ପଦେ ପଦେ ଏଥି     ତା' କଥା କହିବ
ବଳେ ଯେଣୁ ବ୍ୟଥା ଭାର

ତାପସ କୁମାରୀ     ମେଳେ ଲୋ ମିତଣୀ
କେତେ ବାର ରାଜରାଣୀ
ଜାନକୀ ଯାଇଛି     ଏଇ ତଟ୍ରୋପୂଳା
କୂଳେ ଆଣିବାକୁ ପାଣି

କଳସୀ ଭରଣ     ଫେରେ ତପସ୍ୱିନୀ
ଶିଶୁ ଗୃହ ଅଳବାଳେ
ନିଜ ପୁତ୍ର କନ୍ୟା     ପରି ମଣି ତାଙ୍କ
ପାଳନ୍ତିନ ସଲିଳ ଢାଳେ

ହରିଣ ଶିଶୁଙ୍କୁ     କୋଳେ ଧରି କେତେ
ବାର ଝରେ ଅଶ୍ରୁଧାର
'ମାୟା ମୃଗ ଠାରେ     ସେ ଜନ ସମ୍ପର୍କ'
ଦେଖିଅଛେ ସୂତ୍ର ତାହାର

ସେ ଜନ ସ୍ୱପନ    ପ୍ରେମ ତାର ପ୍ରତି
ଛୁ ଥିଲା ସ୍ୱାଳର ବସି
ଛୁଣ୍ଡିଗଲା ସତେ    କେଉଁ ପାପ ଫଳେ
ପଛଠୁଁ ସେ ପ୍ରେମ ରସି

ରାମ ସିନା ଦେଲେ    ଲୋକ ଅପବାଦେ
ଛାଡ଼ାଇ ସେ ରସି ଡ଼ାଳେ
'ଜାନକୀର ରାମ'    ଜାନକୀ ଅନ୍ତରେ
ଅଛନ୍ତି ଚିର କାଳେ

ସ୍ମୃତି ଟଳ ଚିତ୍ର    କେତେ ରଙ୍ଗେ ଅଙ୍କି
ନାରୀର ମାନସ ପଟେ
ଉଦାସ–ନୟନେ    ଅଶ୍ରୁ, ଅର୍ଦ୍ଧ, ମୁଖେ
ହା ନାଥ ହା ନାଥ ରଟେ

ଅସମ୍ପୂର୍ଣ୍ଣ ହେବ    ସତୀ ହୃଦ କଥା
ବାସ୍ତବ-କଥାରେ ଯେଣୁ
ଜନ ଜନକର    ତାହାର କରୁଣ
ଦୃଶ୍ୟ ମାତ୍ର କଏ ତେଣୁ

କି କଷ୍ଟକ ରମା    ଜନେକ ସେ ସତୀ
ମାହେଶ୍ୱରୀ ପୀଠ ପଟେ
ବସି ଦେଖୁଥିଲା    ପଞ୍ଚଧାର ଦୃଶ୍ୟ
ଜାନି ନେଷ ନୟନରେ

ଅଷାଢ଼ର ଏଇ    ବଉଦ ମାଳା ଗୋ
ଲେଟି ଯାଉଥିଲେ ରଙ୍ଗେ
ଧଳା ବଳମାଳ    ଉଡ଼ି ଯାଉଥିଲେ
ମାଳା ହସ ନଭଅଙ୍ଗେ

ଛଳ ଛଳ ନେତ୍ରେ ବହିଥିଲା ସଖୀ
ଅଶ୍ରୁଢେ କହିଲା ମୋତେ
ହାୟ ସ୍ୱାମୀ ତବ ଶ୍ରୀଅଙ୍ଗେ ଏସନ
ମୋ କଣ୍ଠର ମାଳା ଶୋଭେ

ବିଜୁଳି ଝଟକେ ଚମକି ଉଠିଲି
ଏଥିସେ କନକ-କାନ୍ତ
‘ପଡ଼ିଲି ଅଘାତ ବଜ୍ରଦ’ ସମ୍ହି
ଦୂରେ ଗଲା ତାର ଭ୍ରାନ୍ତ

ମେଘରୁ ଅବୁଲେ ଶରପଣେ ଯିବା
ପାଇଁ କହେ ହର ଅଳି
“ତବ ପ୍ରାଣେ ଦୁଃଖ ନ କହାଇବାକୁ
ଅହ୍ଲିଗିଲା ନାହିଁ ମନ

ଜାଣେ ତବ ସ୍ନେହ, ମାତ୍ରକ ପରନା
ଟଂକନେ ଢେଙ୍କାଛ ବନେ
ନେଇ ମୋ ବାରତା କହିବେ ପ୍ରଭୁଙ୍କୁ
‘ଅଭାଗୀ ଅଛି ଜୀବନେ’

କହିବୁ ଜଳଦ ମିତ୍ର ଅଟେ ତୋର
ଗର୍ବେ ମୋର ଅଛି ଧନ
ତାଙ୍କର ଅମୂଲ୍ୟ ମଣି ପେଣ୍ଡୁ କାଲ
ହରେ ତାଙ୍କ ନାମ ସ୍ମର

ନୁହେଁ ଦସ୍ୟୁକୁଣ୍ଡ ନୁହେଁ ଅଗ୍ନିକୁଣ୍ଡ
ଯଥ ସଖୀ ତପ୍ତ ଶ୍ୱାସ
ଯୁଗପରେ ଯୁଗ ଯାଉଛି ମିଳିକି
ଯାଉଛ ସେ ତାପୋଚ୍ଛ୍ୱାସ

ଝ ଜଙ୍ଗଲ ରମା      କେତେ ଯେ ଘଟଣା
ଶୁଣିଲୁ ଅଭାଗୀ କଥା
ତା ପରିଣୁ ବନ      ତା କଥା ସ୍ମରଣେ
ମୋ ପ୍ରାଣେ ଲାଗଇ ବ୍ୟଥା

ଏଇ ସେ ଅନୂଢ      ଶାଳେ ଦିନେ ସତୀ
ବେନି ସୁତ କୋଳେ ଧରି
ଚୁମ୍ବ ଦେଉଥାଏ      ନୟନରୁ ଅଶ୍ରୁ
ବିନ୍ଦୁ ପଡୁଥାଏ ଝରି

ରାଜ ଭବନରେ      ଲାଗିଥାନ୍ତା ଯାଙ୍କ
ଲାଗି କେତେ ଆଡ଼ମ୍ବର
ହାୟ ବିଧି ଲେଖ      ଅରଣ୍ୟେ ଶିଶୁ
ପରାୟ ଦଶା ତାଙ୍କର

ପଞ୍ଚଧାର ଶିରେ      ଜଳଦ ବିମାନ
ରଖି, ଏହି ତପୋବନେ
କାନନ ଝଂକାରେ      ଆସିଛୁ ସଜନି
ଆଶ୍ୱାସ ସଖୀର ମନେ

ବାଲ୍ମୀକି ଲେଖନୀ      ମୁନେ ମୁଁ ଗାଉଛୁ
ସେ ରାମାୟଣ ଲହରୀ
ଲବ କୁଶ କଣ୍ଠେ      ବସି ଭଜାଉଛୁ
ସାରା ଅଯୋଧ୍ୟା ନଗରୀ

ହାୟ ଗୋ ସେଦିନ      କାହାଣୀ ଜାଗିଲେ
ବୁକୁ ପଡ଼େ ମୋର ଫାଟି
'ମା ବସୁଧା ତୁଇ      ଅଶ୍ରୟ ଦିଅଗୋ
କହୁ ଯେବେ ପଥ କାଟି

ଚଳିଲେ ଜାନକୀ ଧରାଗର୍ଭେ, ଭ୍ରମ
ମଣ୍ଡଳେ ପଶିଲ ରାଣି
ଏ ଛବି ଦଶନେ କା' ଅନ୍ତର କହ
ବ୍ୟଥାରେ ନ ହେବ ଜାଣି

ଏହି ସେହି ସ୍ଥଳୀ ତପସ୍ୱିନୀ ଦୁଃଖ
କାହାଣୀ ପୂରିଛ ବନ
ନାହିଁ ସେ ବିପିନ ମାନବ ଏ ଭୂମି
ସ୍ଥିର ତାର ନିଦର୍ଶନ

ବାଲ୍ମିକୀ ତପୋ ଧନ ତପୋବନେ
ତାପସ କୁମାରଙ୍କର
ଯଜ୍ଞ ବେଦୀ ଯଜ୍ଞ କୁଣ୍ଡେ ଉଠୁଥିଲା
ଏ ଘନ ବନ ସୁନ୍ଦର

ଉଠୁଥିଲା ଏଥୁଁ ବେଦ ମନ୍ତ୍ର ଧ୍ୱନି
ଅଭ୍ରଭେଦୀ ଯଜ୍ଞ ଧୂମ
ପ୍ରକୃତି ନମ୍ରତ ସମୀରେ ଅଂଜଳି
ଢାଳଇ ବନ-କୁସୁମ

କାହିଁ ଲୁଚିଗଲା କାଳ-ସୁଅଧାରେ
ସେ ତପି-କୁଟୀର ଅଙ୍କ
ତ୍ରିବେଣୀ କୁଣ୍ଡର ଚିହ୍ନ ନାହିଁ ମାତ୍ର
ତ୍ରୈବେଣୀ ପ୍ରଗଳା ଅଙ୍କ

ଉଠୁ ନାହିଁ ଯଜ୍ଞ- ଧୂମ ମନ୍ଦ୍ର ଅଙ୍କ
ଉଠେ ବାଷ୍ପ ଘନ ଘନ
କାଳ ଜଳ ଭରି ଯାଉଛୁ ଅଛି ସେ
ମୂକ ଯଜ୍ଞ-କୁଣ୍ଡ ବନ

ନୂହେ ରକ୍ତ କୁଣ୍ଡ   ହେବ ପଦ୍ମ ସେଇ
ଶ୍ରୀରାମ ଅଙ୍ଗ ରୁଧିର
କାଳ ଗତି ଦେଖି   ଅଛି ଯୁଗେ ଯଡ଼ି
ସ୍ୱରୂପ ଲୋହିତ ନୀର

'ଶ୍ରୀରାମ ଅଙ୍ଗର   ରୁଧିର' ପଦଟି
ଶୁଣି ଚମକିଲେ ରମା
ରାମ ଅଙ୍ଗୁ ରକ୍ତ   କିପାଁ ସ୍ରବେ ଏଥି
କହ ବିଶ୍ୱ ମନୋରମା

କହିଲେ ଭାରତୀ   ମନେ କି ନଧରେ
ଅଶ୍ୱମେଧ ଯଜ୍ଞ କଥା
ଯଜ୍ଞ ଅଶ୍ୱ ବାନ୍ଧି   ରଖିଲେ ଯେ କାଳେ
ସୀତା ପୁତ୍ର ସାମର୍ଥା

ଲବ କୁଶ ସଙ୍ଗେ   ଶ୍ରୀରାମ ଲକ୍ଷ୍ମଣ
ଭରତ ଶତ୍ରୁଘ୍ନ ରଣ
ପିତା ପୁତ୍ର ରଣେ   ଚାରି ଭ୍ରାତ ଯେବେ
ପଡ଼ି ହେଲେ ଅଚେତନ

ଲବ କୁଶ ଶରେ   ରଘୁ କୁଳପତି
ସେ ଅଙ୍ଗ ରୁଧିର ଧାର
ଝରିଥିଲା ଯାହା   ଧରା ତା' ସଞ୍ଚିଲା
ଅପୂର୍ବ ସମ୍ପଦ ସାର

ଜନକ କନ୍ୟା ଦୁଃଖ   ହୃତ୍କୁଳ ଆଦର୍ଶ
ଦେଇଛନ୍ତି ଗୌରବ ରକ୍ଷି
ଯୁଗ ଜନ ପାଇଁ   ସାଇତି ଥିଲା ଯା
ଚାରି ଯୁଗ ଯୁଗେ ଅଛି

ନାହାନ୍ତି ବାଲ୍ମୀକୀ ନାହାନ୍ତି ଶ୍ରୀରାମ
ନାହାନ୍ତି ସେ ଜାନକୀ ରାଣୀ
ନାହାନ୍ତି ସେ ଲବ କୁଶ ଗୋ ମାନଙ୍କ
ଚିର ଜୀବନ୍ତ କାହାଣୀ

କେବଳ ରହିଛି ସେ ଚିହ୍ନ ଗୋ ମୋର
ହୃଦୟ ଭରିଲ ଚିହ୍ନ
ପଞ୍ଚଧାର ତୂଳେ ନିରେଖେ ଯେବେ ଗୋ
ଏ କାନନ ଦ୍ୱଚ ଶିଖି

ଅଉ ଏକ କଥା ଶୁଣ ଗୋ କମଳା
ଏ ସ୍ଥାନ ଗୁପ୍ତ ମହିମା
ବସୁଚର ତଳେ ଗୋପିଲା ତା' କୀର୍ତ୍ତି
କାଳ ବିସ୍ତାରି ଗରିମା

ପୁଣି କେତେକାଳ ପରର କଥା ଏ
ଶୁଣ ଗୋ ମୋର ମିତଣୀ
ଏହି ବନେ ଘନେ କୀର୍ତ୍ତି ବଢ଼ାଇଲେ
ଉତ୍କଳ ମୁକୁଟ ମଣି

ଶ୍ରୀଅନଙ୍ଗଭୀମ ଉତ୍କଳ-କେଶରୀ
ଚଢ଼ବାକୁ ନୀଳାଚଳ
'ଓଡ଼ିଶା' ନଗର ଥାପି ସଜ୍ଜିବେ
ଏଥି ଶ୍ରୀକ୍ଷେତ୍ର ମଣ୍ଡଳ

କଳା-ସୁକୁଶଳ ଓଡ଼ିଆ ପୁଅଙ୍କୁ
ଲଗାଇଲେ ଏକରାତ୍ର
ପ୍ରାତେ ଉଷା ହେଲା ଯେବେଠି ଦେଉଳ
ଲକ୍ଷେକରୁ ଏକମାତ୍ର

ନୋହିଲ ' ଓଡ଼ିଶା '     ଶୈଳେନ୍ଦ୍ର ମାଳିକ
ଏ ଓଡ଼ଗିଙ୍ଗା ନଗଙ୍କ
ମଣ୍ଡିଲେ ଏ ସ୍ଥଳ     ମଲ୍ଲଭୂମି ଅଧି-
ପତି ଚିଦ୍ଧ ମାହେଶ୍ୱରୀ

ନାହିଁ ସେ ଉତ୍କଳ     ସେ ଅନଙ୍ଗଭୀମ
ସେ ଉତ୍କଳ ଶିଳ୍ପ ଖ୍ୟାନା
ଚନ୍ଦ୍ରେଡ କମଳା     ଦୃଷ୍ଟି କଲ ଉଣା
ଅଛି ସେ ଉତ୍କଳ ଦୀନା।

ପଞ୍ଚଧାର ଶିରେ     ଜଳଦ ସ୍ପନ୍ଦନେ
ମଧ୍ୟେ ମଧ୍ୟେ ସ୍ଫୁରିଁ ଆସି
ଦେଖିଯାଏ ଏଇ     ସେଇ ବନ-ଭୂମି
ମଣ୍ଡିତ ମହିମା ରାଶି

ଅନର୍ଗଳ ଛନ୍ଦେ     କହୁଥିଲେ ଦେବୀ
ସହସା ଜଳଦ ମାଳେ
ଝଟକିଲା ବିଦ୍ୟୁତ୍     ସେ ବେଳ ଅମରୀ
ଘନ ବଉଦ ଉଡ଼ାଳେ

ସ୍ୱପନ ଅବେଶ     ଲୁଚିଗଲେ କାହିଁ
କଳ୍ପନା ଶିଖରୁଁ ଖସି
ଚାହିଁଲି ଚକିତେ     ନିଜକୁ ମୁଁ ଅଛୁ
ସିଦ୍ଧେଶ୍ୱର ପୀଠେ ବସି

# ସଂକ୍ଷିପ୍ତ ଟିପ୍ପଣୀ

ଅଠମଲ୍ଲିକ ନଗରର ୪ ମାଇଲ ଦୂରରେ 'ଦେଉଳଝରି' ଏକ ରମଣୀୟ ସ୍ଥାନ, 'ବାଲ୍ମୀକୀ ମହର୍ଷିଙ୍କ ତପୋବନ' 'ସୀତାଙ୍କ ଅରଣ୍ୟବାସ' 'ଲବକୁଶଙ୍କ ଜନ୍ମସ୍ଥଳୀ' ବୋଲି ଏଠିକାର ଲୋକମୁଖରୁ କିମ୍ବଦନ୍ତୀ ଶୁଣାଯାଏ ।

ଅଦ୍ୟମଧ୍ୟ ଏଠାରେ ଶ୍ରୀକ୍ଷେତ୍ର ଦେବାପଇଁ ଗଙ୍ଗବଂଶୀ ଅନଙ୍ଗ ଭୀମଙ୍କ ଦେଉଳ ତୋଳାଇବାର ପ୍ରବାଦ ଅଛି । ଲୋକଙ୍କରୁ ଗୋଟିଏ ଦେଉଳ ରାତି ମଧ୍ୟରେ ନିର୍ମିତ ହୋଇ ନପାରିବାରୁ ଶ୍ରୀକ୍ଷେତ୍ର ପୂଜା ତଥା ନୃତ୍ୟକୁ ଏଠିକାର ଭାଷାରେ 'ଓଡ଼ିଶା' ନହୋଇ 'ଓଡ଼ିଙ୍ଗା' ହେଲା ।

ଏହାର ନିକଟରେ ଓଡ଼ଗିଙ୍ଗା ଗ୍ରାମ, ସିଦ୍ଧେଶ୍ୱରଙ୍କ ମନ୍ଦିର, ମାହେଶ୍ୱରଙ୍କ ଉଦ୍ଭବସ୍ଥାନ ତଥା କୁମ୍ଭୀରଙ୍କ ଯୀରକୋଳି ବେଷ୍ଟିତ ବଣ, ନିକଟରେ 'ବାଦୁଡ଼ୀ' ଝରଣା - ବାଦୁଡ଼ୀରେ ଏହି ଝରଣା ଉଜାଣି ଉଠେ ଓ ସିଦ୍ଧେଶ୍ୱରଙ୍କ ସ୍ନାନ କରି ୨୪ ଘଣ୍ଟା ମଧ୍ୟରେ ପୁନର୍ବାର ପୂର୍ବପରି ବହେ ବୋଲି କହନ୍ତି ।

ଏଠାରେ ଉତ୍ପ୍ରସ୍ରବଣ ଆ 'ଯାଗା ଥିବା ସ୍ଥଳେ ସୁଶୀତଳ ଝରଣା ଓ ଜଳକୁଣ୍ଡ ମଧ୍ୟ ଅଛି । ତାହା 'ତପ୍ତ' 'ଅଗ୍ନି' ଚିତ୍ର କୁଣ୍ଡ ନାମରେ କଥିତ ।

PREINTED AT THE KADAMBA PRESS, ATHMALLIK.

